# ମହାତ୍ମାଗାନ୍ଧୀ ଓ ରାଜନୀତି




ଓଡ଼ିଶା ରାଜ୍ୟ ଗାନ୍ଧୀ ଶତବାର୍ଷିକୀ ସଂସଦ ଉପସମିତ

୨ । ୧୦ । ୧୯୬୯

# ମହାତ୍ମା ଗାନ୍ଧୀ ଓ ରାଜନୀତି



ସତ୍ୟ ପ୍ରେମ ଅହିଂସା

ଓଡ଼ିଶା ରାଜ୍ୟ ଗାନ୍ଧୀ ଶତବାର୍ଷିକୀ ସଂସଦ ଉପସମିତି

୨ । ୧୦ । ୧୯୬୯

## ଓଡ଼ିଶା ରାଜ୍ୟ ଗାନ୍ଧୀ ଶତବାର୍ଷିକୀ ସଂସଦ ଉପସମିତି

୧—ଶ୍ରୀଯୁକ୍ତ ବନମାଳୀ ପଟ୍ଟନାୟକ—ଶିକ୍ଷାମନ୍ତ୍ରୀ—ସଭାପତି,

୨— ,, ଶତ୍ରୁଘ୍ନ ନାଥ ସମ୍ପାଦକ

୩— ,, ରତନ ଦାସ ,,

୪—ଡକ୍ଟର ସଦାଶିବ ମିଶ୍ର ସଦସ୍ୟ

୫—ଅଧ୍ୟାପକ ଭୁବନାନନ୍ଦ ରାୟ ,,

୬—ଡକ୍ଟର ବୈଦ୍ୟନାଥ ମିଶ୍ର ,,

୭—ଅଧ୍ୟାପକ ମୁକୁନ୍ଦ ମିଶ୍ର ,,

୮—ଶ୍ରୀଯୁକ୍ତ ସୁଧାଂଶୁ ଶେଖର ଦାସ ,,

୯— ,, ବଧୂଭୂଷଣ ଦାସ ,,

୧୦—ଅଧ୍ୟାପକ ହୃଦାନନ୍ଦ ରାୟ ,,

୧୧—ଶ୍ରୀଯୁକ୍ତ କୃଷ୍ଣନାଥ ରଥ ,,

୧୨—ଶ୍ରୀଯୁକ୍ତା ସୁମିତ୍ରା ଚୌଧୁରୀ ,,

୧୩—ଶ୍ରୀଯୁକ୍ତ ବୈଦ୍ୟନାଥ ରଥ ,,

# ମୁଖବନ୍ଧ

ସଂସଦ, ଆଲୋଚନାଚକ୍ର, ପ୍ରବନ୍ଧ ଲିଖନ ମାଧ୍ୟମରେ ବୁଦ୍ଧିଜୀବୀ, ଶିକ୍ଷାବିତ୍ ଓ ଶିକ୍ଷାର୍ଥୀମାନଙ୍କ ମଧ୍ୟରେ ମହାତ୍ମା ଗାନ୍ଧୀଙ୍କର ବିଚାର ଉପସ୍ଥାପନ କରିବା ଓଡ଼ିଶା ଗାନ୍ଧୀ ଶତବାର୍ଷିକୀ ସଂସଦ ଉପସମିତିର ପ୍ରଧାନ କାର୍ଯ୍ୟ । ଏଥିପାଇଁ ଓଡ଼ିଶାର ବିଭିନ୍ନ ଶିକ୍ଷାନୁଷ୍ଠାନ ଓ ବିଶ୍ୱବିଦ୍ୟାଳୟରେ ସଂସଦ ଓ ଆଲୋଚନାଚକ୍ର ଆଦି କରାଯାଉଅଛି । ଏତଦ୍‌ବ୍ୟତୀତ ଗ୍ରାମାଞ୍ଚଳରେ ମଧ୍ୟ ଯୁବଶିବିର ଓ ଆଲୋଚନା ସଭା ଆଦିର ଆୟୋଜନ ହେଉଅଛି ।

ଗାନ୍ଧୀ ଶତବାର୍ଷିକୀ ଅବଧି ମଧ୍ୟରେ ଗାନ୍ଧୀ ବିଚାର ଧାରାର ବିଭିନ୍ନ ଦିଗପ୍ରତି ଦୃଷ୍ଟି ଦିଆଯାଇ ଆଲୋଚନା ପାଇଁ ବିଷୟ ସ୍ଥିର କରାଯାଉଅଛି । ରାଷ୍ଟ୍ରୀୟ ଶତବାର୍ଷିକୀ ସଂସଦ ଉପସମିତି ବିଚାରଧାରାର ବିଷୟ ସମ୍ବନ୍ଧରେ ସୂଚନା ନିମ୍ନ ପ୍ରକାରେ ଦେଇଛନ୍ତି ।

୧—ଗାନ୍ଧୀଜୀଙ୍କର ଶିକ୍ଷାପ୍ରତି ଅବଦାନ ।
୨—ଗାନ୍ଧୀଜୀଙ୍କର ରାଜନୀତି ପ୍ରତି ଅବଦାନ ।
୩—ଗାନ୍ଧୀଜୀଙ୍କର ଅର୍ଥନୀତି ପ୍ରତି ଅବଦାନ ।
୪—ଗାନ୍ଧୀଜୀଙ୍କର ଧର୍ମ ଓ ଦର୍ଶନ ପ୍ରତି ଅବଦାନ ।
୫—ଉପଜାତି ଓ ଅବହେଳିତ ଜନତାଙ୍କର ଉତ୍ଥାନ ପାଇଁ ଗାନ୍ଧୀଜୀଙ୍କର ଅବଦାନ ।

୧୯୬୯ ମସିହା ଫେବୃୟାରୀ ୧୭ ଓ ୧୮ ତାରିଖରେ ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାରଠାରେ "ଗାନ୍ଧୀଜୀଙ୍କର ରାଜନୀତି ପ୍ରତି ଅବଦାନ" ବିଷୟ ଉପରେ ଯେଉଁ ରାଜ୍ୟସ୍ତରୀୟ ସଂସଦ ଅନୁଷ୍ଠିତ ହୋଇଥିଲା ସେଥିରେ ପଠିତ କେତୋଟି ପ୍ରବନ୍ଧ ଏହି ପୁସ୍ତକରେ ପ୍ରକାଶ ପାଉଅଛି । ଏହି ସଂସଦକୁ ଓଡ଼ିଶାର ଶିକ୍ଷାମନ୍ତ୍ରୀ ତଥା ଗାନ୍ଧୀ ଶତବାର୍ଷିକୀ ସଂସଦ ଉପସମିତିର ସଭାପତି ଶ୍ରୀ ବନମାଳୀ ପଟ୍ଟନାୟକ ଉଦ୍‌ଘାଟନ କରିଥିଲେ ।

ପ୍ରଥମ ଦିନ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଡକ୍ଟର ସଦାଶିବ ମିଶ୍ର ଓ ଦ୍ୱିତୀୟ ଦିନ ରାଜନୀତି ବିଜ୍ଞାନର ମୁଖ୍ୟ ଅଧ୍ୟାପକ ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ ସଭାପତିତ୍ୱ କରିଥିଲେ । ୧୮ ତାରିଖ ପୂର୍ବାହ୍ନର ଆଲୋଚନା ଶ୍ରୀ ନନ୍ଦକିଶୋର ଦାସ ଓ ସେଦିନର ଅପରାହ୍ନ ଆଲୋଚନା ଶ୍ରୀ ରତନ ଦାସ ଆରମ୍ଭ କରିଥିଲେ । ଉଭୟଦିନ କାର୍ଯ୍ୟକ୍ରମରେ ପ୍ରବନ୍ଧପାଠ ଓ ଆଲୋଚନା ସ୍ଥାନ ପାଇଥିଲା । ଏଠାରେ ବହୁ ଅଧ୍ୟାପକ, ଛାତ୍ର ଓ ସମାଜସେବୀ ଅଂଶ ଗ୍ରହଣ କରିଥିଲେ ।

ଡ: ବେଣୁଧର ପ୍ରଧାନ, ଅଧ୍ୟାପକ ହରିହର ଦାଶ, ଶ୍ରୀ ହରିହର ମିଶ୍ର, ଅଧ୍ୟାପିକା ଶାରଦା ରଥ, ଶ୍ରୀ ଶ୍ୟାମସୁନ୍ଦର ମିଶ୍ର, ଅଧ୍ୟାପକ ତ୍ରିଲୋଚନ ଶତପଥି, ଅଧ୍ୟାପକ ବିଷ୍ଣୁଚରଣ ରାଉତ, ଅଧ୍ୟାପକ ଭାସ୍କର ଚନ୍ଦ୍ର ଦାଶ ପ୍ରମୁଖ ଓ ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ବିଭାଗ ଛାତ୍ରମାନଙ୍କ ମଧ୍ୟରୁ ସର୍ବଶ୍ରୀ ରଣଜିତ୍ କୁମାର ଦାସ, ଅଶୋକ ତ୍ରିପାଠି, ମନୋରଞ୍ଜନ ମିଶ୍ର ପ୍ରମୁଖ ପ୍ରବନ୍ଧ ପାଠ କରିଥିଲେ । ଆଲୋଚନାରେ ଯୋଗ ଦେଇ ଆଲୋଚନାକୁ ବଳିଷ୍ଠ କରିବାପାଇଁ ଉତ୍ସାହ ପ୍ରକାଶ ପାଇଥିଲା । ଡ: ବିଦ୍ୟାଧର ମିଶ୍ର, ଡ: ଗଣନାଥ ମିଶ୍ର, ଡ: ବୈଦ୍ୟନାଥ ମିଶ୍ର, ଡ: ମନ୍ମଥନାଥ ଦାସ, ଶ୍ରୀ ଶତ୍ରୁଘ୍ନ ନାଥ, ଶ୍ରୀ ଏ: ଭି: ସ୍ୱାମୀ, ଶ୍ରୀ ହରମୋହନ ପଟ୍ଟନାୟକ, ଶ୍ରୀ ପ୍ରଦୀପ୍ତ କିଶୋର ଦାସ, ଶ୍ରୀ ସୁଧାଂଶୁଶେଖର ଦାସ, ଶ୍ରୀ ହରିହର ପଣ୍ଡା, ଅଧ୍ୟାପକ ରବିନାରାୟଣ ଦାସ, ଅଧ୍ୟାପକ ବି: ଏନ୍ ପଟ୍ଟନାୟକ, ଅଧ୍ୟାପକ ସତ୍ୟନାରାୟଣ ରଥ, ଶ୍ରୀ ବିଜୟାନନ୍ଦ କର, ଶ୍ରୀ ଅଶୋକ କୁମାର ମିଶ୍ର, ଶ୍ରୀ ପ୍ରଭାତ କୁମାର ମହାନ୍ତି, ଶ୍ରୀ ଅମରନାଥ ମିଶ୍ର, ଶ୍ରୀ ଧ୍ରୁବଚରଣ ସ୍ୱାଇଁ, ଶ୍ରୀ ପିତାମ୍ବର ପ୍ରଧାନ ପ୍ରମୁଖ ଆଲୋଚନାରେ ଭାଗ ନେଇଥିଲେ ।

ନିମ୍ନୋକ୍ତ କେତୋଟି ବିଷୟର ଆଲୋଚନାର ସାରମର୍ମରୂପେ ପ୍ରକାଶ ପାଇଥିଲା ।

୧—ଗାନ୍ଧୀଜୀ ରାଜନୀତିରେ ଆଧ୍ୟାତ୍ମିକତାର ପ୍ରୟୋଗ କରିଥିଲେ ।

୨—ଶୁଦ୍ଧ ସାଧନ ଜରିଆରେ ହିଁ ଶୁଦ୍ଧ ଲକ୍ଷ୍ୟରେ ପହଞ୍ଚିହେବ ।

୩—ଅହିଂସା ଓ ପ୍ରେମ ଆଧାରରେ ସମାଜବାଦୀ ଲୋକତନ୍ତ୍ର ପ୍ରତିଷ୍ଠା କରିବା ତାଙ୍କର ରାଜନୈତିକ ଲକ୍ଷ୍ୟ ଥିଲା ।

୪—ରାଷ୍ଟ୍ରର ବିଲୀନକରଣ ତାଙ୍କର ରାଜନୈତିକ ଆଦର୍ଶ ଥିଲା ।

୫—ତତ୍ତ୍ୱ ଓ ଆଚରଣ ମଧ୍ୟରେ ଐକ୍ୟ ପ୍ରତିଷ୍ଠା କରିବାକୁ ସେ ତାଙ୍କର ଜୀବନର ବ୍ରତ ବୋଲି ଗ୍ରହଣ କରିଥିଲେ ।

୬—କାର୍ଲ ମାର୍କସ ପରି ସେ ମଧ୍ୟ ବ୍ୟକ୍ତିଗତ ମାଲିକାନାକୁ ଅସ୍ୱୀକାର କରିଥିଲେ । ତାଙ୍କର ଟ୍ରଷ୍ଟିସିପ୍ ତତ୍ତ୍ୱଦ୍ୱାରା ସେ ଗରିବମାନଙ୍କର ସମ୍ପତ୍ତି ଉପରେ ଅଧିକାରକୁ ସାବ୍ୟସ୍ତ କରିଥିଲେ ଏବଂ ଧନୀମାନଙ୍କୁ ସମାଜର ସମସ୍ତ ସମ୍ପତ୍ତିର ମାଲଫତ୍ତଦାର ବୋଲି ଅଭିହିତ କରିଥିଲେ ।

୭—ଅହିଂସକ ପନ୍ଥା ଜରିଆରେ ସମାଜରେ ସମ୍ପତ୍ତିର ପୁନର୍ବଣ୍ଟନ ଏବଂ ନିୟନ୍ତ୍ରଣ କରିବା ତାଙ୍କର ଧ୍ୟେୟ ଥିଲା ।

୮—କ୍ଷମତାର ସମ୍ପୂର୍ଣ୍ଣ ବିକେନ୍ଦ୍ରୀକରଣଦ୍ୱାରା ରାଷ୍ଟ୍ରକୁ କ୍ଷମତାହୀନ କରି ଲୋକଙ୍କ ହାତରେ ସମସ୍ତ କ୍ଷମତା ଦେବାକୁ ସେ ଚାହିଁଥିଲେ । ଦେଶବାସୀଙ୍କୁ ଆତ୍ମନିର୍ଭରଶୀଳ ଓ ସ୍ୱୟଂଶାସିତ ହେବାକୁ ସେ ପରାମର୍ଶ ଦେଉଥିଲେ ।

୯—ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟତାରେ ତାଙ୍କର ଆସ୍ଥା ଥିଲା । କାରଣ ଏହାଦ୍ୱାରା ହିଁ କେବଳ ବ୍ୟକ୍ତିର ସର୍ବାଙ୍ଗୀନ ବିକାଶ ହେବ ବୋଲି ସେ ବିଶ୍ୱାସ କରୁଥିଲେ ।

୧୦—ରାଜନୀତି କ୍ଷେତ୍ରରେ ସେ ଆତ୍ମାର ବିଜ୍ଞାନର ପ୍ରୟୋଗ କରିଥିଲେ ।

୧୧—ଦେଶାତ୍ମବୋଧ ଓ ନୈତିକତା ବିହୀନ ରାଜନୀତିକୁ ସେ ଘୃଣା କରୁଥିଲେ ।

୧୨—ପ୍ରତ୍ୟେକ ରାଜନୈତିକ କର୍ମୀ ତ୍ୟାଗ, ସହିଷ୍ଣୁତା ଓ ସେବାଭାବ ମାଧ୍ୟମରେ କେବଳ ରାଜନୈତିକ ଜୀବନ ଯାପନ କରିପାରିବେ ବୋଲି ସେ ଚାହୁଁଥିଲେ ।

୧୩—କ୍ଷମତା ଓ ଦଳୀୟ ରାଜନୀତି ପରିବର୍ତ୍ତେ ସେ ସେବାମୂଳକ ରାଜନୀତି ପ୍ରଚଳନ କରିବାକୁ ଚାହୁଁଥିଲେ ।

୧୪—ସେ ଭାରତକୁ ଏକ ଅଭିନବ ପନ୍ଥାରେ ପରାଧୀନତାରୁ ମୁକ୍ତ କରି ପୃଥିବୀର ସମସ୍ତ ପରାଧୀନ ରାଷ୍ଟ୍ରଗୁଡ଼ିକର ମୁକ୍ତି ପାଇଁ ବାଟ ଖୋଲି ଦେଇଥିଲେ ଏବଂ ଏହାହିଁ ତାଙ୍କ ଜୀବନର ଶ୍ରେଷ୍ଠତମ ରାଜନୈତିକ ବିପ୍ଳବ ଥିଲା ।

୧୫—ଜନସାଧାରଣଙ୍କର ଶକ୍ତିର ସର୍ବାଙ୍ଗୀନ ବିକାଶ କରି ସେମାନଙ୍କୁ ଦେଶର ନୈତିକ ବିକାଶ ପାଇଁ ନିୟୋଜିତ କରିବାକୁ ସେ ଚାହୁଁଥିଲେ ।

୧୬—'ପ୍ରତ୍ୟେକ ମଣିଷ ଭିତରେ ଭଲ ଗୁଣ ରହିଛି'—ଏହି ମୌଳିକ ତତ୍ତ୍ୱକୁ ସେ ରାଜନୈତିକ ସିଦ୍ଧାନ୍ତରୂପେ ଗ୍ରହଣ କରିଥିଲେ ।

ଆମର ଆଶା ଓ ବିଶ୍ୱାସ, ଏହି ପୁସ୍ତକଟି ଗାନ୍ଧୀଜୀଙ୍କ ରାଜନୈତିକ ବିଚାର ଧାରାକୁ ଚିନ୍ତନ ଓ ମନନ କରିବାରେ ସହାୟକ ହେବ । ଯେଉଁସବୁ ବନ୍ଧୁ, ଆଲୋଚକ, ଅଧ୍ୟାପକ, ଶିକ୍ଷାର୍ଥୀ ଓ ଉତ୍କଳ ବିଶ୍ୱବିଦ୍ୟାଳୟର ସର୍ମକର୍ତ୍ତାଙ୍କ ଅକ୍ଳାନ୍ତ ପରିଶ୍ରମ, ଅକୁଣ୍ଠିତ ସହଯୋଗ ଓ ପ୍ରେରଣା ଯୋଗୁଁ ଏହି ସମ୍ବଦଟି ସଫଳ ହେଲା ସେମାନଙ୍କୁ ଆମ୍ଭେମାନେ ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଅଛୁଁ ।

ଭୁବନେଶ୍ୱର
୨-୧୦-୭୯

ଶତ୍ରୁଘ୍ନ ନାଥ
ରତନ ଦାସ

---

# ରାଜନୀତିକୁ ମହାତ୍ମାଜୀଙ୍କର ଦାନ

ଶ୍ରୀ ଶ୍ୟାମ ସୁନ୍ଦର ମିଶ୍ର, ସଭ୍ୟ, ହିନ୍ଦ୍ ସେବକ ସଂଘ,
କଟକ

[ ୧ ]

ମାନବ ସମାଜର ସୁଖ, ଦୁଃଖ, ଆନନ୍ଦ, ନିରାନନ୍ଦ, ପ୍ରଗତି, ଅଧୋଗତି ଏହା ସହିତ ତାହାର ରାଜନୀତି ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ଏହି ରାଜନୀତି ଇତିହାସର ବିଭିନ୍ନ ପର୍ଯ୍ୟାୟରେ ବିଭିନ୍ନ ଭାବରେ ଦେଖା ଦେଇଛି । ଏକ ସମୟରେ ଶାସ୍ତ୍ରକାର ମନୁ କହିଥିଲେ—

"ବାଲୋଽପି ନାବମନ୍ତବ୍ୟଃ ମନୁଷ୍ୟଇତି ଭୂମିପଃ,
ମହତୀ ଦେବତା ହ୍ୟେଷା ନର ରୂପେଣ ତିଷ୍ଠତି ।"

ସେହିପରି ୟୁରୋପରେ ପ୍ରଚଳିତ ହୋଇଥିଲା—"The Divine Right of Kings." ରାଜାର ସ୍ୱୈରାଚାର ଏକ ସମୟରେ ଦେଶର ଏକମାତ୍ର ରାଜନୀତି ଥିଲା କିନ୍ତୁ କାଳକ୍ରମେ ଅବସ୍ଥା ବଦଳି ଯାଇଛି । ବର୍ତ୍ତମାନ ସମଗ୍ର ପୃଥିବୀର ସଭ୍ୟଦେଶ ସବୁ ସ୍ୱୀକାର କଲେଣି ଯେ ରାଜନୀତିର ମୂଳଲକ୍ଷ୍ୟ ହେଉଛି "The greatest good of the greatest number" ଅର୍ଥାତ୍ ବହୁ ସଂଖ୍ୟକ ଲୋକଙ୍କର ସର୍ବାଧିକ କଲ୍ୟାଣ । ସମଗ୍ର ମାନବ ସମାଜର ସମୃଦ୍ଧି ଉନ୍ନତି ରାଜନୀତିର ମୂଳଲକ୍ଷ୍ୟ ହେବା ଉଚିତ । ଏହା ସ୍ୱୀକୃତ ହୋଇଥିଲେ ହେଁ ସ୍ୱାର୍ଥପରତା ମନୁଷ୍ୟକୁ ସହଜରେ ଛାଡ଼େ ନାହିଁ । ଯେଉଁମାନେ ଦକ୍ଷିଣ ଆଫ୍ରିକାରେ ମୁଷ୍ଟିମେୟ ଗୋରାଲୋକଙ୍କର ବର୍ଣ୍ଣବୈଷମ୍ୟ ନୀତି ଲକ୍ଷ୍ୟ

କରୁଛନ୍ତି, ଯୁକ୍ତରାଷ୍ଟ୍ର ଆମେରିକା ଭଳି ସଭ୍ୟ ଗଣତନ୍ତ୍ରରେ ନିଗ୍ରୋମାନଙ୍କର ନିର୍ଯାତନା ଆଖି ଆଗରେ ଦେଖୁଛନ୍ତି ଏବଂ ଆମ ଜନ୍ମଭୂମି ଭାରତବର୍ଷରେ ତଥାକଥିତ ଅସ୍ପୃଶ୍ୟମାନଙ୍କପ୍ରତି ସବର୍ଣ୍ଣ ହିନ୍ଦୁମାନଙ୍କର ଅତ୍ୟାଚାର ସ୍ମରଣ କରୁଛନ୍ତି ସେମାନେ ଭାବିବା ସ୍ୱାଭାବିକ ଯେ ସମଗ୍ର ମାନବ ଜାତିର କଲ୍ୟାଣ ରାଜନୀତିର ଘୋଷିତ ଉଦ୍ଦେଶ୍ୟ ହେଲେହେଁ, ଏହା କାର୍ଯ୍ୟକାରୀ କରାଯିବା ବହୁ ସମୟ ସାପେକ୍ଷ । ମହାତ୍ମା ଗାନ୍ଧୀ ଥିଲେ ଏପରି ରାଜନୀତିଜ୍ଞ ଯେଉଁ ସମସ୍ତ ଆନ୍ତରିକତାର ସହିତ ସମଗ୍ର ମାନବ ସମାଜର କଲ୍ୟାଣ କାମନା କରୁଥିଲେ । ସେ ଯେତେବେଳେ ସତୁରିବର୍ଷ ବୟସରେ ପଦାର୍ପଣ କଲେ, ସେତେବେଳେ ତାଙ୍କ ଉଦ୍ଦେଶ୍ୟରେ ଯେଉଁ ଅଭିନନ୍ଦନ ଗ୍ରନ୍ଥ ଡକ୍ଟର ରାଧାକୃଷ୍ଣନଙ୍କ ସମ୍ପାଦକତ୍ୱରେ ପ୍ରକାଶିତ ହୋଇଥିଲା ସେଥିରେ ଡକ୍ଟର ରାଧାକୃଷ୍ଣନ୍ ତାଙ୍କ ସମ୍ବନ୍ଧରେ ଲେଖିଛନ୍ତି:—"He stood out for the essential principle that men qua men are equal and artificial distinctions based on race and colour were both unreasonable and immoral. ( Mahatma Gandhi, Essays and Reflections—Page 19 ) ଅର୍ଥାତ୍ ମାନବ ମାତ୍ରେ ସମାନ, ଏହା ଥିଲା ମହାତ୍ମାଙ୍କ ମତରେ ସାରକଥା । ସେ ଅପ୍ରାକୃତ ସମସ୍ତ ରକମ ବୈଷମ୍ୟକୁ ଅଯଥାର୍ଥ ଓ ଦୁର୍ନୀତିଗ୍ରସ୍ତ ବୋଲି ମନେ କରୁଥିଲେ । ତାଙ୍କର ନିଜ ଭାଷାରେ କହିବାକୁ ଗଲେ :—I went to identify myself with everything that lives. In the language of the Gita I want to live at peace with both friend and foe. So my patriotism is for me a stage on my journey to the land of eternal freedom and peace (C.F.Andrews Mahatma Gandhi—His own Story PP. 353-4,357) ସୁତରାଂ ଯେଉଁଠାରେ ଚିରନ୍ତନ ସ୍ୱାଧୀନତା ଏବଂ ଶାନ୍ତି ବିରାଜମାନ ସେହିଠାରେ ପ୍ରବେଶ କରିବା ମହାତ୍ମାଙ୍କର ଧ୍ୟେୟ ଥିଲା । ଏଥିରୁ ସହଜରେ ବୁଝି ହେବ ଯେ ସେ କ୍ଷମତା ରାଜନୀତିର ଉପାସକ ନ ଥିଲେ । ତାଙ୍କ ମତରେ ରାଜନୀତି

ଥିଲା ଧର୍ମର ଏକ ଅଙ୍ଗ । ସେ ସମଗ୍ର ମାନବ ସମାଜର କଲ୍ୟାଣ ଦୃଷ୍ଟିରୁ ପ୍ରତ୍ୟେକ ବିଷୟର ଆଲୋଚନା କରୁଥିଲେ । ତାଙ୍କ ଭାଷାରେ କହିବାକୁ ଗଲେ :—I recognise no God except God that is to be found in the hearts of dumb millions. They do not recognise His presence; I do. And I worship God that is Truth or Truth which is God, through the service of these millions.' ( Harijan-March 11, 1939 ) ଯେଉଁଠାରେ ସେ ଏହି କଲ୍ୟାଣର ବ୍ୟତ୍ୟୟ ଦେଖୁଥିଲେ ସେଠାରେ ସେ ନିଜର ସମସ୍ତ ନିଷ୍ଠା ଓ ଆନ୍ତରିକତା ସହ ତାହା ବିରୁଦ୍ଧରେ ଠିଆ ହେଉଥିଲେ । ଅହିଂସ ଉପାୟରେ ସମସ୍ତ ସମସ୍ୟାର ସମାଧାନ କରିବା ତାଙ୍କ ଜୀବନର ମୂଳ ଲକ୍ଷ୍ୟ ଥିଲା କାରଣ କୌଣସି ବ୍ୟକ୍ତି-ବିଶେଷ ବା ପ୍ରାଣୀ ପ୍ରତି କେବେହେଲେ ତାଙ୍କର ବିରାଗ ବା ବିରୋଧ ନ ଥିଲା । ସେ ଦୁର୍ନୀତି ଗ୍ରସ୍ତ ବ୍ୟବସ୍ଥା ବା ପରିସ୍ଥିତିର ବିରୋଧ କରୁଥିଲେ । କିନ୍ତୁ ଏହା କଲାବେଳେ ମଧ୍ୟ କୌଣସି ବ୍ୟକ୍ତିବିଶେଷଙ୍କ ପ୍ରତି ତାଙ୍କର ଆକ୍ରୋଶ ନ ଥିଲା । ୧୯୩୦ ମସିହାରେ ଭାରତର ତତ୍କାଳୀନ ବଡ଼ଲାଟ ଲର୍ଡ଼ ଇରୱିନ୍‌ଙ୍କଠାକୁ ସେ ଲେଖିଥିଲେ :—My personal faith is absolutely clear. I cannot intentionally hurt anything that lives.' ଏଥିରୁ ସ୍ପଷ୍ଟ ପ୍ରମାଣିତ ହେବ ଯେ ମହାତ୍ମାଗାନ୍ଧୀ ରାଜନୀତିକୁ ମାନବ ସମାଜର ତୁଚ୍ଛ ଈର୍ଷା, ଦ୍ୱେଷ, ବାଦ, ବିବାଦର ବହୁ ଉର୍ଦ୍ଧ୍ୱକୁ ନେଇ ତାହାକୁ ସମଗ୍ର ମାନବ ଜାତିର ମଙ୍ଗଳ ଲାଗି ବ୍ୟବହାର କରିଥିଲେ । ଏହାହିଁ ଥିଲା ରାଜନୀତି ପ୍ରତି ମହାତ୍ମାଜୀଙ୍କର ବିପୁଳ ଦାନ । ସେ ରାଜନୀତିକୁ ଆଧ୍ୟାତ୍ମିକ ଭିତ୍ତି ଉପରେ ପ୍ରତିଷ୍ଠିତ କରିଥିଲେ ଏବଂ ଅହିଂସା ମାଧ୍ୟମରେ ସମସ୍ତ ସମସ୍ୟାର ସମାଧାନ ତାଙ୍କ ରାଜନୀତିର ମୂଳମନ୍ତ୍ର ଥିଲା । ନିଜର ତ୍ୟାଗ, ନିଷ୍ଠା, ଓ କୃଚ୍ଛ୍ର ସାଧନା ମାଧ୍ୟମରେ ଶତ୍ରୁର ହୃଦୟ ଜୟ କରିବା ତାଙ୍କର ମୂଳନୀତି ଥିଲା । ଫଳରେ ଏହା ହେଲା ଯେ ଯଦି ଦକ୍ଷିଣ ଆଫ୍ରିକାରେ ଜେନେରେଲ ସ୍ମଟ୍‌ସ ସରକାର ବିରୁଦ୍ଧରେ ଲଢୁଥିଲେ ମଧ୍ୟ, ନିଜେ ଜେନେରେଲ ସ୍ମଟସ୍ ତାଙ୍କର ଜଣେ ବିଶିଷ୍ଟ ବନ୍ଧୁ

ଏବଂ ପ୍ରଶଂସକ ହୋଇପାରିଥିଲେ । ସେହିପରି ସେ ବ୍ରିଟିଶ ସାମ୍ରାଜ୍ୟବାଦର ଧ୍ୱଂସ ସାଧନ ଲାଗି ବଦ୍ଧପରିକର ଥିଲେ ହେଁ ବହୁ ବିଲାତବାସୀ ତାଙ୍କର ଭକ୍ତ ଓ ସମର୍ଥକ ଥିଲେ ଏବଂ ସମଗ୍ର ମାନବ ସମାଜର ଚିନ୍ତା ଧାରା ପ୍ରତି ତାଙ୍କର ଯେ ବିପୁଳ ଦାନ ରହିଛି ଏହା ମୁକ୍ତ କଣ୍ଠରେ ସ୍ୱୀକାର କରୁଥିଲେ । ମହାତ୍ମାଜୀ ମନେ କରୁଥିଲେ ଯେ ଲୋକ ଯଦି ସାଧୁ ଏବଂ ସଚ୍ଚରିତ୍ର ହୁଏ ତାହାହେଲେ ସେ ଏକା ହେଲେ ମଧ୍ୟ ଅତି କଠିନ ଉଦ୍ଦେଶ୍ୟ ସାଧନ କରିପାରେ । ତାଙ୍କ ମତରେ କୌଣସି ଆନ୍ଦୋଳନ ସେ ଆନ୍ଦୋଳନର ଅନୁଚରମାନଙ୍କ ସଂଖ୍ୟା ଉପରେ ଯେତେ ନିର୍ଭର ନ କରେ, ସେତେ ନିର୍ଭର କରେ ସେମାନଙ୍କର ତ୍ୟାଗ, ଚରିତ୍ରବଳ ଓ ସାଧୁତା ଉପରେ । ତେଣୁ ଆମ ଦେଶରେ ବ୍ରିଟିଶ ସରକାର ବିରୁଦ୍ଧରେ ସେ ଯେତେବେଳେ ବ୍ୟକ୍ତିଗତ ସତ୍ୟାଗ୍ରହର ପ୍ରବର୍ତ୍ତନ କଲେ, ସେତେବେଳେ ନିଷ୍ଠା ଏବଂ ସାଧୁତା ଦୃଷ୍ଟିରୁ ସେ ବିନୋବା ଭାବେଙ୍କୁ ପ୍ରଥମ ସତ୍ୟାଗ୍ରହୀ ରୂପେ ବାଛି ଥିଲେ । ନିଜ ଜୀବନ ଏବଂ କାର୍ଯ୍ୟାବଳୀ ଦ୍ୱାରା ମହାତ୍ମାଜୀ ପ୍ରମାଣିତ କରିଛନ୍ତି ଯେ ଜଣେ ଲୋକ ଅଦମ୍ୟ ଉଦ୍ୟମ ଏବଂ ଏକାନ୍ତ ନିଷ୍ଠା ବଳରେ ସମଗ୍ର ପୃଥିବୀର ମାନବ-ସମାଜକୁ କେତେଦୂର ପ୍ରଭାବିତ କରିପାରେ । ତାଙ୍କର ଜୀବନୀ ଲେଖକ ଲୁଇଫିସର ତାଙ୍କ ସମ୍ବନ୍ଧରେ ଲେଖିଛନ୍ତି :—Millions obeyed Gandhi, myriads adored him, multitudes accounted themselves his followers, only a handful did as he did. He knew it. The knowledge did not diminish his volcanic energy or break his steel will.' ( The life of Mahatma Gandhi-Louis Fischer, Part II, Page-118. )

ପ୍ରତ୍ୟେକ ମାନବର ବୈଶିଷ୍ଟ୍ୟ ଓ ବ୍ୟକ୍ତିତ୍ୱର ବିକାଶ ଲାଗି ମହାତ୍ମା ଗାନ୍ଧୀ ଏତେଦୂର ଆଗ୍ରହୀ ଥିଲେ ଯେ ସେ ରାଷ୍ଟ୍ର ହାତରେ ସର୍ବନିମ୍ନ କ୍ଷମତା ଦେବାପାଇଁ ଇଚ୍ଛୁକ ଥିଲେ । ସେ ମନୁଷ୍ୟ ମେସିନ ବ୍ୟବହାର କରିବାର ବିରୋଧୀ ନ ଥିଲେ । କିନ୍ତୁ ବଡ଼ ବଡ଼ ଶିଳ୍ପ ପ୍ରତିଷ୍ଠାନରେ ମନୁଷ୍ୟ ଯେପରି ମେସିନ ଭଳି କାମ କରୁଥିଲା ଏବଂ ଜିନିଷ ତିଆରି କରିବାରେ ସହାୟକ

ହେବା ବ୍ୟତୀତ ତାହାର ଯେ ଅନ୍ୟ ସତ୍ତା ନ ଥିଲା. ମହାତ୍ମାଜୀ ଏହାର ଘୋର ବିରୋଧୀ ଥିଲେ । ମାନବର ପୂର୍ଣ୍ଣ ସ୍ୱାଧୀନତା ଏବଂ ବିକାଶ ତାଙ୍କର ଧ୍ୟେୟ ଥିବା ହେତୁ ସେ ବିକେନ୍ଦ୍ରିତ ଶାସନ ତଥା ଶିଳ୍ପରେ ବିଶ୍ୱାସ କରୁଥିଲେ । ସେ ଚାହୁଁ ଥିଲେ ଯେ ପ୍ରତ୍ୟେକ ଗ୍ରାମ ସ୍ୱାବଲମ୍ବୀ ହୋଇ ଏକ ଗ୍ରାମରାଷ୍ଟ୍ରରେ ପରିଣତ ହେଉ । ଲୋକେ ଅନ୍ୟ ଉପରେ ବା ଅନ୍ୟ ଦେଶ ଉପରେ ନିର୍ଭର ନ କରି ସେମାନଙ୍କର ଜୀବନଯାତ୍ରା ନିର୍ବାହ କରନ୍ତୁ । ଏହାର ଅର୍ଥ ଏହା ନ ଥିଲା ଯେ ସେ ଆନ୍ତର୍ଜାତୀୟ ବ୍ୟବସାୟ ବା ସମ୍ପର୍କ ପସନ୍ଦ କରୁ ନ ଥିଲେ । ସମଗ୍ର ବିଶ୍ୱର ମାନବ ସମାଜ ଯେ ପରସ୍ପରର ବନ୍ଧୁ, ଏହା ତାଙ୍କ ଜୀବନର ମୂଳ ଲକ୍ଷ୍ୟ ଥିଲା । ତଥାପି ସେ ଚାହୁଁ ଥିଲେ ଯେ ପ୍ରତ୍ୟେକ ଲୋକ ଯେତେଦୂର ସମ୍ଭବ ସ୍ୱାବଲମ୍ବୀ ହେବା ଉଚିତ । ତାହାହେଲେ କେହି କାହାର ଗଳଗ୍ରହ ହେବ ନାହିଁ ବା କେହି କାହାକୁ ଶୋଷଣ କରିବାକୁ ଅବକାଶ ପାଇବ ନାହିଁ । ବିଶାଳ ଶିଳ୍ପର ପ୍ରତିଷ୍ଠା ଯେ ବିଶାଳ ବିକାର ଚାହେଁ, ଏଥିରେ ସନ୍ଦେହର ଅବକାଶ ନାହିଁ । ଯେଉଁ ଯେଉଁ ଦେଶରେ ବଡ଼ ବଡ଼ ଶିଳ୍ପ ପ୍ରତିଷ୍ଠିତ ହୋଇଛି, ସେହି ସେହି ଦେଶ ସବୁ ଶିଳ୍ପ ଦିଗରେ ଅନୁନ୍ନତ ଦେଶଗୁଡ଼ିକରେ ତାଙ୍କର ତିଆରି ଜିନିଷ ବିକ୍ରୀ କରିବା ଲାଗି ସେମାନଙ୍କ ଉପରେ ରାଜନୀତିକ ତଥା ଆର୍ଥନୀତିକ ପ୍ରଭାବ ପକାଉଛନ୍ତି । ଏହି ଉପାୟରେହିଁ ଦଳେ ଲୋକ ଅନ୍ୟ ଦଳେ ଲୋକଙ୍କୁ ଶୋଷଣ କରନ୍ତି । କହିବା ବାହୁଲ୍ୟ ଯେ ମହାତ୍ମାଜୀ ଏହି ବ୍ୟବସ୍ଥାର ପୂର୍ଣ୍ଣ ବିରୋଧୀ ଥିଲେ । ଆଗରୁ କୁହାଯାଇଛି ଯେ ସେ ଚାହୁଁ ଥିଲେ ସବୁ ଦେଶର ମଣିଷ ଯେପରି ସମାନ ହେବେ । ତେଣୁ ସେ ବ୍ୟକ୍ତିର ଉନ୍ନତି ଏବଂ ବିକାଶ ଉପରେହିଁ ସମସ୍ତ ଜୋର ଦେଉଥିଲେ । ସେ ରାଷ୍ଟ୍ରର ପ୍ରତିଷ୍ଠା ଚାହୁଁ ଥିଲେ, କିନ୍ତୁ ତାଙ୍କ ମତରେ ରାଷ୍ଟ୍ରର ଲକ୍ଷ୍ୟ ହେବା ଉଚିତ—ରାଷ୍ଟ୍ରବାସୀ ପ୍ରତ୍ୟେକ ବ୍ୟକ୍ତିର ଉନ୍ନତି ଏବଂ ବିକାଶ । ମାନବ ସମାଜର କଲ୍ୟାଣ ସାଧନ ଲାଗି ରାଷ୍ଟ୍ରକୁ ସେ ଏକ ଆୟୁଧ ରୂପେ ବ୍ୟବହାର କରିବାକୁ ଚାହୁଁ ଥିଲେ । ତେଣୁ ସେ ଶାସନ ଏବଂ ଶିଳ୍ପ କ୍ଷେତ୍ରରେ ବିକେନ୍ଦ୍ରୀ-କରଣରେ ପକ୍ଷପାତୀ ଥିଲେ ଏବଂ ପ୍ରତ୍ୟେକ ଗ୍ରାମକୁ ଏକ ସାଧାରଣତନ୍ତ୍ରରେ ( Republic ) ପରିଣତ କରିବାକୁ ଚାହୁଁ ଥିଲେ ।

ଆଗରୁ କୁହାଯାଇଛି ଯେ ମାନବର ବ୍ୟକ୍ତିତ୍ୱପ୍ରତି ମହାତ୍ମାଜୀଙ୍କର ଯଥେଷ୍ଟ ସମ୍ମାନ ଥିଲା । ମନୁଷ୍ୟ ଭିତରେ ସେ ବଡ଼ସାନ ପ୍ରଭେଦ ମାନୁ ନ ଥିଲେ । ତେଣୁ ତାଙ୍କ କଳ୍ପିତ ଗଣତନ୍ତ୍ରରେ ପ୍ରତ୍ୟେକ ଲୋକର ସମାନ ଅଧିକାର ରହିବା ସେ ପସନ୍ଦ କରୁଥିଲେ । ପୃଥିବୀର ବହୁରାଜ୍ୟ ନିଜକୁ ଗଣତନ୍ତ୍ର ବୋଲି ଘୋଷଣା କରୁଛନ୍ତି । କିନ୍ତୁ ସେମାନଙ୍କ ମଧ୍ୟରୁ ସବୁ ରାଜ୍ୟରେ ଯେ ପ୍ରତ୍ୟେକ ମାନବର ସମାନ ଅଧିକାର ନାହିଁ, ଏହା ଦକ୍ଷିଣ ଆଫ୍ରିକା ତଥା ରୋଡ଼େସିଆ ପ୍ରଭୃତି ଦେଶର ଶାସନ ପ୍ରଣାଳୀ ଦେଖିଲେ ସ୍ପଷ୍ଟ ଜଣାଯିବ । ଶାସନର ପରିଚାଳନାରେ ମହାତ୍ମାଜୀ ଶାସନସ୍ଥିତ ସମସ୍ତ ଲୋକଙ୍କର ସମାନ ଅଧିକାର ଚାହୁଁଥିଲେ । କିନ୍ତୁ ପ୍ରତ୍ୟକ୍ଷ ନିର୍ବାଚନ ପ୍ରଣାଳୀରେ ବଡ଼ ବଡ଼ ନିର୍ବାଚନ ମଣ୍ଡଳୀ ଗଠନ କରିବା ଅପେକ୍ଷା ସେ ନିର୍ବାଚନ ମଣ୍ଡଳୀକୁ କ୍ଷୁଦ୍ର କରି ତା'ର ମାଧ୍ୟମରେ ପରୋକ୍ଷ ନିର୍ବାଚନର ପ୍ରଚଳନ ଚାହୁଁଥିଲେ । ଯେଉଁ ଧାରାରେ 'ନିଖିଳ ଭାରତ କଂଗ୍ରେସ କମିଟି' ଗଠିତ ହେଉଅଛି, ସେହି ଧାରାରେ ସେ କେନ୍ଦ୍ର ସରକାର ତଥା ରାଜ୍ୟ ସରକାର ମାନଙ୍କର ବିଧାନସଭା ଗଠନ କରିବାକୁ ଚାହୁଁଥିଲେ । ଦ୍ୱିତୀୟ ଗୋଲଟେବୁଲ ବୈଠକରେ ଯୋଗଦେଇ ସେ ଏହି ଭଳି ନିର୍ବାଚନପ୍ରଣାଳୀର ପୂର୍ଣ୍ଣ ସମର୍ଥନ ଜଣାଇ ଥିଲେ । କିନ୍ତୁ ଭାରତୀୟ ସମ୍ବିଧାନରେ କେନ୍ଦ୍ର ତଥା ରାଜ୍ୟ ସରକାରଙ୍କର ବିଧାନସଭା ଲାଗି ପ୍ରତ୍ୟକ୍ଷ ନିର୍ବାଚନହିଁ କାଏମ ରହିଲା । କେବଳ କେନ୍ଦ୍ରୀୟ ରାଜ୍ୟସଭା ତଥା ରାଜ୍ୟ ବିଧାନ ପରିଷଦରେ ( Legislative Council ) ପରୋକ୍ଷ ନିର୍ବାଚନ ପ୍ରବର୍ତ୍ତିତ ହେଲା । ତେଣୁ ଏହା କହିବା ଅସଙ୍ଗତ ହେବ ନାହିଁ ଯେ ମହାତ୍ମାଗାନ୍ଧୀ ପୂର୍ଣ୍ଣ ଏବଂ ଅନାବିଳ ଗଣତନ୍ତ୍ର ଶାସନର ପକ୍ଷପାତୀ ଥିଲେ ।

ମୋଟ ଉପରେ କହିବାକୁ ଗଲେ ମହାତ୍ମାଜୀଙ୍କର ବିରାଟ ବ୍ୟକ୍ତିତ୍ୱର ପ୍ରଭାବରେ ହିଁ ଭାରତୀୟ ରାଜନୀତି ମୁଷ୍ଟିମେୟ ଶିକ୍ଷିତ ଲୋକଙ୍କ ଭିତରେ ସୀମାବଦ୍ଧ ନ ରହି ଦେଶର ଆବାଳବୃଦ୍ଧବନିତାଙ୍କ ପ୍ରାଣକୁ ସ୍ପର୍ଶ କରିପାରିଥିଲା । ରାଜନୀତିରେ ମହାତ୍ମାଜୀଙ୍କର ଆବିର୍ଭାବ ପୂର୍ବରୁ ଲାଲା ଲଜପତ୍ ରାୟ, ବାଲ ଗଙ୍ଗାଧର ତିଲକ, ବିପିନଚନ୍ଦ୍ର ପାଲ ପ୍ରଭୃତି ବହୁ ବିଶିଷ୍ଟ ଜନସେବୀ ରାଜନୀତିକୁ ଦେଶର ଜନସାଧାରଣଙ୍କ ନିକଟରେ ପରିଚିତ ଏବଂ ଆଦୃତ

କରିବାର ଉଦ୍ୟମ କରିଥିଲେ । ମହାତ୍ମାଜୀ ଏହି ଉଦ୍ୟମରେ ମୁକ୍ତି ମାରିଥିଲେ ।

କେବଳ ସେତିକି ନୁହେଁ, ସେ ରାଜନୀତିକୁ ଏକ ଉଚ୍ଚ ସ୍ତରକୁ ଉନ୍ନୀତ କରି ତାହାକୁ ସମଗ୍ର ମାନବ ସମାଜର କଲ୍ୟାଣ ଲାଗି ବ୍ୟବହାର କରିଥିଲେ । ରାଜନୀତି ଯେ ଧର୍ମର ଏକ ଅଙ୍ଗ ବିଶେଷ ଏହା ତାଙ୍କର କାର୍ଯ୍ୟାବଳୀରେ ସେ ପ୍ରମାଣିତ କରିଥିଲେ । ତାଙ୍କର ଆନ୍ଦୋଳନରେ ଅନ୍ୟାୟ, ଅତ୍ୟାଚାରର ପ୍ରବଳ ବିରୋଧ କରାଯାଉଥିଲା । କିନ୍ତୁ ସେଥିରେ ଈର୍ଷା ବା ଦ୍ୱେଷର ସ୍ଥାନ ମଧ୍ୟ ନ ଥିଲା । ଏଣୁ ଯେଉଁମାନଙ୍କ ବିରୁଦ୍ଧରେ ଏହି ଆନ୍ଦୋଳନ ହେଉଥିଲା, ସେମାନଙ୍କ ଭିତରୁ ଅନେକେ ଏହି ଆନ୍ଦୋଳନରେ ସାରବସ୍ତୁ ଉପଲବ୍‌ଧି କରୁଥିଲେ । ଭାରତର ସ୍ୱାଧୀନତା ପାଇଁ ମହାତ୍ମାଜୀ ତାଙ୍କର ସମସ୍ତ ଜୀବନ ବ୍ୟୟ କରିଥିଲେ ହେଁ, ତାଙ୍କ ଆନ୍ଦୋଳନର ପ୍ରଭାବ କେବଳ ଭାରତ ଭିତରେ ସୀମାବଦ୍ଧ ନ ଥିଲା । ଏହା ସାରା ବିଶ୍ୱର ଚିନ୍ତାଧାରା ଏବଂ କର୍ମ ପଦ୍ଧତିକୁ ପ୍ରବଳ ଭାବରେ ପ୍ରଭାବିତ କରିଥିଲା ।

---

# ରାଜନୀତିକୁ ମହାତ୍ମାଜୀଙ୍କ ଦାନ

## ଶ୍ରୀ ହରିହର ମିଶ୍ର

[ ୨ ]

ମହାତ୍ମା ଗାନ୍ଧୀଙ୍କ ହରିଜନ ରାଜନୀତିର ଉପାଦାନ ଓ ଧାରା ଉଭୟର ବିଶ୍ଲେଷଣ କଲେ ସ୍ପଷ୍ଟ ଦେଖାଯାଏ ଯେ ସେ ରାଜନୀତିର ପରମ୍ପରା ଭାଙ୍ଗି ଦେଇଥିଲେ । ପୂର୍ବରୁ ଧାରଣା ଥିଲା ଯେ ରାଜନୀତିକ ସମାଜ ମୁଖ୍ୟତଃ ଅନୈତିକ ଏବଂ ଗୋଟିଏ ସତ୍‌କାର୍ଯ୍ୟକୁ ସଫଳ କରିବାପାଇଁ ସତ୍‌ପନ୍ଥା ଅବଲମ୍ବନ କରିବା ବାଧ୍ୟତାମୂଳକ ନୁହେଁ । ଗାନ୍ଧୀଜୀ ଦୃଢ଼ ଭାବରେ ଏହି ରାଜନୀତିକ ତତ୍ତ୍ୱ ବା ଧାରଣାର ପ୍ରତିରୋଧ କରୁଥିଲେ । ରାଜନୀତିକ ଚିନ୍ତାଧାରାରେ ଏହି ବୈପ୍ଳବିକ ପରିବର୍ତ୍ତନ ଆଣିବା ଗାନ୍ଧୀଜୀଙ୍କର ବୈଶିଷ୍ଟ୍ୟ ଓ ତାଙ୍କ କର୍ମପନ୍ଥାର ମହତ୍ତ୍ୱ । ରାଜନୀତିକ ଉଦ୍ଦେଶ୍ୟ ସାଧନପାଇଁ ସେ ଯେଉଁ କୌଶଳ ପ୍ରୟୋଗ କରୁଥିଲେ ତାହା ନମ୍ରତା ଓ ସତର୍କତାର ସମନ୍ୱୟ ଓ ସ୍ୱେଚ୍ଛାଚାରଦୁଷ୍ଟ କ୍ଷମତାର ପ୍ରତିରୋଧ ସହିତ ବ୍ୟକ୍ତିଗତ ଭଦ୍ରାଚରଣ ଓ ବନ୍ଧୁଭାବର ସମାବେଶ ଦ୍ୱାରା ରଚିତ ହୋଇଥିଲା । ସେ ନିଜେ ନେତୃତ୍ୱର କ୍ଷମତାକୁ ତୁଚ୍ଛ ମଣୁଥିଲେ । ତେଣୁ ସହଯୋଗମୂଳକ କର୍ମ-ପନ୍ଥାରେ ଗୋଷ୍ଠୀର ମତାମତକୁ ସ୍ୱୀକାର କରିବାରେ ଦ୍ୱିଧା କରୁନଥିଲେ ବା ନିଜେ ପ୍ରୟୋଗ କରିଥିବା ଉପାୟକୁ ବର୍ଜନ କରିବାରେ ପଶ୍ଚାତ୍‌ପଦ ହେଉ ନ ଥିଲେ । ସେ ୧୯୨୨ ଖ୍ରୀଷ୍ଟାବ୍ଦରେ ଆଇନଅମାନ୍ୟ ଆନ୍ଦୋଳନ ଆରମ୍ଭ କରିଥିଲେ । ମାତ୍ର ଆନ୍ଦୋଳନ ପୂର୍ଣ୍ଣମାତ୍ରାରେ ଚାଲୁ ହେବା ପୂର୍ବରୁ, ଉତ୍ତର ପ୍ରଦେଶର ଗୋରଖପୁର ଜିଲ୍ଲାର ଚୌରିଚୌରାଠାରେ ଜନତାର

ହିଂସାକାଣ୍ଡର ସମ୍ବାଦ ପାଇ ସେ ତୁରନ୍ତ ଆନ୍ଦୋଳନ ବନ୍ଦ କରି ଦେଇଥିଲେ । ଏଥିରେ ତାଙ୍କର ସହକର୍ମୀଗଣ ଅତ୍ୟନ୍ତ ଉତ୍ତେଜିତ ହୋଇଥିଲେ ମାତ୍ର ଗାନ୍ଧୀଜୀ ସେମାନଙ୍କର ସମାଲୋଚନା ବା କଟୂକ୍ତି ବା ଅପ୍ରୀତିକରଣ ଦ୍ୱାରା ଭୀତ ହୋଇନଥିଲେ । ସେ କହିଥିଲେ ଯେ କାର୍ଯ୍ୟପନ୍ଥାର ବିପର୍ଯ୍ୟସ୍ତ ରାଜନୀତିକ ଦୃଷ୍ଟିକୋଣରୁ ଅସମୀଚୀନ ଓ ଅଙ୍କତାପୁଷ୍ଟ ହୋଇପାରେ ମାତ୍ର ଧର୍ମଦୃଷ୍ଟିରୁ ଏହା ନଭୁଲ୍ ।

ଗାନ୍ଧୀଜୀଙ୍କ ଦୃଷ୍ଟିରେ ଧର୍ମର ଅର୍ଥ ନୈତିକ ବିଶ୍ୱାସ । ସେ କେବେହେଁ ତାଙ୍କର ରାଜନୀତିକ କର୍ମସଂସ୍ଥାନକୁ ନୈତିକବିଶ୍ୱାସର ପରିସର ବାହାରେ ଅନ୍ୟକୌଣସି ଭାବରେ ଦେଖି ନଥିଲେ । ଯେ କୌଣସି ପ୍ରକାରର ହିଂସାତ୍ମକ କାଣ୍ଡ ବା ପ୍ରବୃତ୍ତି, ନୈତିକ ବିଶ୍ୱାସର ବିରୋଧୀ । ତେଣୁ ରାଜନୀତିକ ଦ୍ୱନ୍ଦ୍ୱ ବା ବିପ୍ଳବ ପ୍ରଚେଷ୍ଟାରେ ସେ କୌଣସି ପ୍ରକାରର ହିଂସାତ୍ମକ କାର୍ଯ୍ୟକୁ ପ୍ରଶ୍ରୟ ଦେଉନଥିଲେ । ୧୯୨୮ ଖ୍ରୀଷ୍ଟାବ୍ଦରେ ଗାନ୍ଧୀଜୀ ବର୍ଦ୍ଦୋଲିରେ ପୂର୍ଣ୍ଣିଅରେ ସତ୍ୟାଗ୍ରହ ଆନ୍ଦୋଳନ ଆରମ୍ଭ କଲେ ଏବଂ ଏହି ଆନ୍ଦୋଳନ ପୂର୍ଣ୍ଣରୂପେ ଅହିଂସ ଭାବରେ ପରିଚାଳିତ ହୋଇଥିଲା । ସେ ଅନ୍ୟତ୍ର ସହାନୁଭୂତି ସୂଚକ ଆନ୍ଦୋଳନ କରାଇ ଦେଇନଥିଲେ । ଆନ୍ଦୋଳନ ଫଳରେ ସରକାର ଲୋକମାନଙ୍କର ଦାବୀ ସ୍ୱୀକାର କରିଥିଲେ ।

ଗାନ୍ଧୀଜୀଙ୍କ ଦୃଷ୍ଟିରେ, ସତ୍ୟାଗ୍ରହ ବା ଆଇନ ଅମାନ୍ୟ ଆନ୍ଦୋଳନ କେବଳ ଗୋଟିଏ ରାଜନୀତିକ କୌଶଳର ପ୍ରୟୋଗ ନୁହେଁ ଅଥବା ତିକ୍ତତା, କ୍ରୋଧ, ବୈଫଲ୍ୟ, ନିର୍ଯ୍ୟାତନା ବା ବୈରଭାବରୁ ଜାତ ସାମୟିକ ଉତ୍ତେଜନା ଚାଳିତ କାର୍ଯ୍ୟପନ୍ଥା ନୁହେଁ । ଏହା ଜୀବନ ଧାରଣର ଏକ ଭଙ୍ଗୀ, ଏକ ପ୍ରଣାଳୀ । ଲବଣ ସତ୍ୟାଗ୍ରହ ଅଭିଯାନର ଆରମ୍ଭ ଦିବସ ୧୯୩୦ ମସିହା ମାର୍ଚ୍ଚ ୧୨ତାରିଖଠାରୁ ଦାଣ୍ଡୀ ପହଞ୍ଚିବା ଦିବସ ଅପ୍ରେଲ ୬ ତାରିଖ ପର୍ଯ୍ୟନ୍ତ, ଯାତ୍ରାପଥରେ ପ୍ରତ୍ୟେକ ଦିନ ଗାନ୍ଧୀଜୀ ଲୋକମାନଙ୍କୁ ଖଦୀ ପିନ୍ଧିବାକୁ, ବାଲ୍ୟବିବାହ ପ୍ରଥା ବନ୍ଦ କରିବାକୁ, ନିର୍ମଳ ଜୀବନ ଯାପନ କରିବାକୁ ଅସ୍ପୃଶ୍ୟତା ବର୍ଜନ କରିବାକୁ ନିଶାଦ୍ରବ୍ୟର ବ୍ୟବହାର ତ୍ୟାଗ କରିବାକୁ, ନିବେଦନ କରୁଥିଲେ ଓ ପ୍ରବର୍ତ୍ତାଉ ଥିଲେ ଏବଂ ଏହିପରି ଭାବରେ ଦିନ

କାଟିବା ପରେ କେବଳ ଯେତେବେଳେ ଡାକ ଆସିବ, ସେତେବେଳେ ଆଇନ ଅମାନ୍ୟ କରିବାକୁ ପ୍ରସ୍ତୁତ ରହିବାକୁ ବୁଝାଉଥିଲେ ।

ଗାନ୍ଧୀଜୀ, ରାଜନୀତିକ ଅସ୍ତ୍ର ଭାବରେ ସତ୍ୟାଗ୍ରହର ବ୍ୟବହାର ଦକ୍ଷିଣ ଆଫ୍ରିକାରେ ଆରମ୍ଭ କରିଥିଲେ ଓ ଏହାକୁ ଦୁଇଥର ପ୍ରୟୋଗ କରିଥିଲେ । ଥରେ ୧୯୦୭ ମସିହାରେ ଓ ପୁଣିଥରେ ୧୯୧୩ ମସିହାରେ । ସତ୍ୟାଗ୍ରହ ସେହି ସମୟରୁ ଅହିଂସ ପ୍ରତିରୋଧ ଅର୍ଥରେ ବୁଝାଯାଉଛି । ୧୯୧୩ ମସିହାରେ ଦକ୍ଷିଣ ଆଫ୍ରିକାରେ ଗାନ୍ଧୀଜୀ ଯେବେ, ଦକ୍ଷିଣ ଆଫ୍ରିକା ସରକାର ଭାରତୀୟ ଶ୍ରମିକମାନଙ୍କ ଉପରେ ବସିଥିବା ବାର୍ଷିକ କର ଉଠାଇ ଦେବା ପ୍ରତିଶ୍ରୁତି ରକ୍ଷା ନକରିବା ଯୋଗୁଁ, ୨୫୦୦ ଶ୍ରମିକଙ୍କର ନେତୃତ୍ୱ ନେଇ ସରକାରଙ୍କର ଉଦାସୀନତା ବିରୋଧ କରି ନେଟାଲରୁ ଟ୍ରାନ୍ସଭାଲକୁ ଯାତ୍ରା କଲେ ଓ ତାଙ୍କର ଏହି ଅପୂର୍ବ କୌଶଳ ଉଦ୍ଦେଶ୍ୟ ସାଧନରେ ସାଫଲ୍ୟ ଆଣିଲା, ସେବଠାରୁ ଗାନ୍ଧୀଜୀଙ୍କର ସୁନାମ ଭାରତର ସର୍ବପ୍ରାନ୍ତରେ ବ୍ୟାପ୍ତ ହୋଇଥିଲା । ଗାନ୍ଧୀଜୀ ଭାରତରେ ସର୍ବପ୍ରଥମେ ଏହି କୌଶଳର ପ୍ରୟୋଗ ୧୯୧୭ ମସିହାରେ ବିହାରର ନୀଳଚାଷରେ ନିଯୁକ୍ତ ଅତ୍ୟାଚାରିତ ବର୍ଗଚାଷୀ ଶ୍ରମିକମାନଙ୍କ ସପକ୍ଷରେ କରିଥିଲେ । ଏହା ଫଳରେ "ଚମ୍ପାରନ ଆଗ୍ରେରିଆନ ଆକ୍ଟ" ପ୍ରବର୍ତ୍ତିତ ହୋଇ ଶ୍ରମିକମାନଙ୍କର କ୍ଲେଶର ବହୁପରିମାଣ ଊଣା କରିପାରିଥିଲା । ପ୍ରାୟ ବର୍ଷକ ପରେ ୧୯୧୮ ମସିହାରେ ଏହି କୌଶଳର ଦ୍ୱିତୀୟ ପ୍ରୟୋଗ ଗୁଜରାଟର ଖେଡା ଜିଲ୍ଲାରେ କରାଯାଇଥିଲା । ସେଠାରେ କୃଷୀମାନେ ଚାରିମାସ ଯାବତ୍ ଅହିଂସ ଆନ୍ଦୋଳନ ଚଳାଇ ସରକାରଙ୍କଠାରୁ ତାଙ୍କର ଦାବୀ ହାସଲ କରିପାରିଥିଲେ ।

୧୯୨୦ ମସିହାରେ ଅସହଯୋଗ କାର୍ଯ୍ୟପନ୍ଥାକୁ ଜାତୀୟ କଂଗ୍ରେସର ଆନ୍ଦୋଳନନୀତି ରୂପେ ଗ୍ରହଣ କରାଗଲା ଏହି ଅସହଯୋଗ କାର୍ଯ୍ୟପନ୍ଥା ଓ ଅହିଂସ ଭାବ ଦୁହିଙ୍କ ସମନ୍ୱୟରେ ସତ୍ୟାଗ୍ରହରେ ଗୋଟିଏ ଉଚ୍ଚତରକ୍ରମ ସୃଷ୍ଟି କରାଗଲା । ଏହାର ପରୀକ୍ଷା ପୁଣିଥରେ ବର୍ଦ୍ଦୋଲିଠାରେ ହେଲା ।

ଗାନ୍ଧୀଜୀ ଅହିଂସା ନୀତିକୁ କେବଳ ଅନ୍ତର୍ଦ୍ଦେଶୀୟ ଆନ୍ଦୋଳନର ସ୍ତମ୍ଭ ସ୍ୱରୂପ ଦେଖୁ ନ ଥିଲେ—ବହିର୍ଦ୍ଦେଶୀୟ ଯୁଦ୍ଧ ସମ୍ପର୍କରେ ମଧ୍ୟ ତାଙ୍କର

ଏହି ନୀତିରେ ବିଶ୍ୱାସ ଅଟଳ ଥିଲା । ଏପରିକି ୧୯୪୧ ମସିହା ଡିସେମ୍ବର ମାସ ଶେଷ ଆଡ଼କୁ ଓ ନେହୁରୁଙ୍କ ଅଷ୍ଟମଥର ଜେଲ ଭୋଗ ଦଣ୍ଡରୁ ମୁକ୍ତି ପାଇଲା ପରେ, ବର୍ଦ୍ଧୋଲିଠାରେ କଂଗ୍ରେସ କାର୍ଯ୍ୟକାରୀ ସମିତିର ସଭ୍ୟମାନଙ୍କର ଯୁଦ୍ଧ ସମ୍ପର୍କରେ ଅହିଂସନୀତି ପ୍ରଯୁଜ୍ୟ ନୁହେଁ ଏହି ଯୁକ୍ତିରେ ଏକମତ ହୋଇ ନ ପାରି ଗାନ୍ଧୀଜୀ କଂଗ୍ରେସର ନେତୃତ୍ୱ ତ୍ୟାଗ କରିଥିଲେ । ଗାନ୍ଧୀଜୀଙ୍କ, ଅହିଂସା ନୀତିର ଆଚରଣ, ଜୀବନର ଓ ଜୀବନ ଧାରଣ ଢଙ୍ଗର ଦର୍ଶନତତ୍ତ୍ୱ ସ୍ୱରୂପ ପ୍ରତିଭାତ ହୋଇଥିଲା । ରାଜନୀତିରେ ଏହାର ପ୍ରୟୋଗ ଏହି ଦର୍ଶନ ତତ୍ତ୍ୱର ଆଂଶିକ ପ୍ରକାଶ ମାତ୍ର । ଦାରିଦ୍ର୍ୟରୁ ଉପୁଜିଥିବା ବହୁ ସାମାଜିକ ସମସ୍ୟା ଯଦ୍ୱାରା ବହୁଲୋକ ବୈଫଲ୍ୟ, ତିକ୍ତତା ଓ ହତାଶାଦ୍ୱାରା ମ୍ରିୟମାଣ ହୋଇ ପଡ଼ନ୍ତି, ଧନଶାଳୀ ଓ କ୍ଷମତାସମ୍ପନ୍ନ ଗୋଷ୍ଠୀଙ୍କର ସହାନୁଭୂତିହୀନତା, ନିଶ୍ଚେଷ୍ଟତା ଓ ଅନ୍ୟାୟର ଅହିଂସ ପ୍ରତିରୋଧ ଦ୍ୱାରା ସମାହିତ ହୋଇପାରେ । ଦୁର୍ନୀତି ଓ ଅସଦାଚରଣରେ ଲିପ୍ତଥିବା ଲୋକମାନଙ୍କ ସହିତ ଅସହଯୋଗ କରି ଓ ମନ୍ଦକାର୍ଯ୍ୟ ବିରୁଦ୍ଧରେ ନୈତିକ ଭାବରେ ଲଢ଼ି ସାମାଜିକ ନ୍ୟାୟର ପ୍ରତିଷ୍ଠା କରିବା ସମ୍ଭବ । ଅହିଂସଭାବ, ବ୍ୟକ୍ତିକୁ, ସମାଜକୁ ଓ ଜାତିକୁ ଏପରି ଶକ୍ତି ଦିଏ ଯାହା ଦୁଃଖ, କ୍ଳେଶ, ଲାଞ୍ଛନା ଓ ଯନ୍ତ୍ରଣା ମଧ୍ୟରେ ଜାଗ୍ରତ ଓ ଜୀବିତ ରହେ । ଗାନ୍ଧୀଜୀ ଦକ୍ଷିଣ ଆଫ୍ରିକାରେ ଜେଲରେ ୨୪୯ ଦିନ ଏବଂ ଭାରତର ଜେଲମାନଙ୍କରେ ୨୦୮୯ ଦିନ ଅତିବାହିତ କରିଥିଲେ । ତିଲକ ଯେ ୧୮୯୭ ମସିହାରେ ଥରେ ଜେଲ ବରଣ କରିଥିଲେ ଓ ୧୯୦୭ ମସିହା ଠାରୁ ୧୯୧୪ ମସିହା ଭିତରେ ଛଅବର୍ଷ ଜେଲରେ ଅତିବାହିତ କରିଥିଲେ, ସେ ଜଣେ କଠୋର ଜାତୀୟତାବାଦୀ ଥିଲେ ଓ ୧୯୨୦ ମସିହା ଅଗଷ୍ଟ ମାସରେ ମୃତ୍ୟୁ ପର୍ଯ୍ୟନ୍ତ ଭାରତର ଜାତୀୟ ସଂଗ୍ରାମର ମୁଖ୍ୟ ସେନାପତି ଥିଲେ । ଗାନ୍ଧୀଜୀ ତାଙ୍କରି ଠାରୁ ନେତୃତ୍ୱର ଧ୍ୱଜା ଗ୍ରହଣ କରିଥିଲେ ଓ ୧୯୨୦ ମସିହାରୁ ୧୯୪୭ ମସିହା ପର୍ଯ୍ୟନ୍ତ ଭାରତର ଜାତୀୟତାପୋତକୁ ବିପ୍ଳବ ଓ ଆନ୍ଦୋଳନ ମଧ୍ୟରେ ଶୃଙ୍ଖଳାରେ ଚଳାଇ ମହିମାମୟ ସ୍ୱାଧୀନତାତଟଭୂମିରେ ଲଗାଇ ପାରିଥିଲେ । ୧୯୨୪ ମସିହାର ମାର୍ଚ୍ଚ ମାସ ୧୦ ତାରିଖ ଦିନ ଗାନ୍ଧୀଜୀ ଅସହଯୋଗ ଚ । ନ ଅପରାଧ ପାଇଁ ଧରାହୋଇ, ବିଚାରରେ ଛଅବର୍ଷ

କାରାଦଣ୍ଡ ପାଇଲେ । ନିଜକୁ ଦୋଷି ବୋଲି ମାନି ସେ କହିଥିଲେ "ମୁ ବିଶ୍ୱାସ କରେ ଯେ ଅସହଯୋଗ ଆନ୍ଦୋଳନଦ୍ୱାରା, ମୁଁ ଭାରତ ଓ ଇଂଲଣ୍ଡ ଉଭୟ ଦେଶପାଇଁ ମଙ୍ଗଳକାର୍ଯ୍ୟ କରିପାରିଛି । ମୁଁ ଦେଖାଇ ଦେଇଛି ଯେ ଦୁଇଦେଶ ଅସ୍ୱାଭାବିକ ଅବସ୍ଥାରେ ଅଛନ୍ତି । ମୋ ମତରେ ଭଲ ସହିତ ସହଯୋଗ ଯେପରି କରିବା ମନ୍ଦ ସହିତ ଅସହଯୋଗ ମଧ୍ୟ ସେହିପରି କରିବା । ୧୯୪୮ ମସିହାରେ ନେହରୁ ସ୍ୱାଧୀନ ଭାରତର ଗୁରୁଭାର ନିଜ ମୁଣ୍ଡରେ ନେଇ ପାରିଥିଲେ । ସେ ନଅ ଥର ଜେଲ୍ ଭୋଗିଥିଲେ ଓ ୩୨୬୨ ଦିନ ଜେଲରେ ଅତିବାହିତ କରିଥିଲେ । ଗାନ୍ଧୀଜୀ ନେହରୁଙ୍କୁ ତାଙ୍କର ଉତ୍ତରାଧିକାରୀ ରୂପେ ଗଢ଼ିଥିଲେ । ନେହରୁଙ୍କ ସମ୍ବନ୍ଧରେ ସେ କହିଥିଲେ "ସେ ସ୍ୱଚ୍ଛ ପଥର ପରି ନିର୍ମଳ ଓ ତାଙ୍କ ସତ୍ୟବାଦିତାରେ ସନ୍ଦେହର ଅବକାଶ ନାହିଁ । ଦେଶ ତାଙ୍କ ହାତରେ ନିରାପଦ ଓ ମୁଁ ଜାଣେ, ମୋ ଉତ୍ତାରୁ ସେ ଠିକ ମୋ ପରି ରହିବେ ।"

ଗାନ୍ଧୀଜୀଙ୍କର ସାଧାରଣ ଅନଶନ ବା ଆମରଣ ଅନଶନ ବ୍ରତ ରାଜନୀତିକ ଦୃଷ୍ଟି କୋଣରୁ ସମସ୍ତଙ୍କର ଅବୋଧ୍ୟ । ଏପରିକି ତାଙ୍କର ଘନିଷ୍ଠ ସହକର୍ମୀ ଓ ବରିଷ୍ଠ ନେତୃବର୍ଗ ତାଙ୍କର ଅନଶନ ବ୍ରତର ଅର୍ଥ ବୁଝି ପାରୁନଥିଲେ । ଗାନ୍ଧୀଜୀ ନିଜେ ଏହାକୁ ଆତ୍ମଶୁଦ୍ଧି କ୍ରିୟା ବୋଲି କହୁଥିଲେ । ମାତ୍ର ଏହାଦ୍ୱାରା ଗାନ୍ଧୀଜୀ କୌଣସି ରାଜନୀତିକ ବା ସାମାଜିକ ଅନ୍ୟାୟ ବା ଦୁର୍ନୀତି ପ୍ରତି ସରକାର ତଥା ଜନସାଧାରଣଙ୍କର ଦୃଷ୍ଟି ଆକର୍ଷଣ କରିପାରୁଥିଲେ, ଓ ଏହାକୁ ଏହି ଅନ୍ୟାୟ ଅଥବା ଦୁର୍ନୀତି ବିରୁଦ୍ଧରେ ଅସ୍ତ୍ରସ୍ୱରୂପ ବ୍ୟବହାର କରିପାରୁଥିଲେ । ୧୯୩୨ ମସିହା ସେପ୍ଟେମ୍ବର ମାସରେ ଗାନ୍ଧୀଜୀ ଜେଲରେ ଥିବା ଅବସ୍ଥାରେ ୨୦ ତାରିଖ ଠାରୁ ଆମରଣ ଅନଶନ କରିବା ନିଷ୍ପତ୍ତି ଘୋଷଣା କଲେ । କାରଣ ସେ ଜାଣିବାକୁ ପାଇଲେ ଯେ "କମ୍ୟୁନାଲ ଆୱାର୍ଡ଼" ବା ସାମ୍ପ୍ରଦାୟିକ ନିଷ୍ପତ୍ତି ପ୍ରଣୟନ କରି ବ୍ରିଟିଶ ସରକାର ଅସ୍ଥାୟୀ ବନ୍ଦୋବସ୍ତ ସ୍ୱରୂପ ସଂଖ୍ୟାଲଘୁ ସମ୍ପ୍ରଦାୟଙ୍କପାଇଁ ବିଧାନ ସଭାରେ ସଂରକ୍ଷିତ ସ୍ଥାନ ନିର୍ଦ୍ଦିଷ୍ଟ କରୁଥିଲେ । ବିଶେଷ କରି ତଫସିଲଭୁକ୍ତ ଜାତି ଓ ସାମ୍ପ୍ରଦାୟର ଲୋକଙ୍କପାଇଁ ଏହି ବ୍ୟବସ୍ଥା ହୋଇଥିବାର ଜାଣି ସେ ମର୍ମାହତ ହେଲେ—କାରଣ ଏହି ଶ୍ରେଣୀର ଲୋକମାନଙ୍କ ଉନ୍ନତିପାଇଁ ସେ

ଆପ୍ରାଣ ଚେଷ୍ଟା ଚଳାଇଥିଲେ । ସେ ଅନୁଭବ କଲେ ଯେ ଏହି ବ୍ୟବସ୍ଥା ଦ୍ୱାରା ହିନ୍ଦୁଧର୍ମ ଖଣ୍ଡ ବିଖଣ୍ଡିତ ହୋଇଯିବ ଓ ଧର୍ମଭାବ ବ୍ୟାହତ ହେବ । ଛଅଦିନ ମଧ୍ୟରେ ମିଳିତ ନିର୍ବାଚନ ମଣ୍ଡଳୀ ଗ୍ରହଣ ରହିବା ସପକ୍ଷରେ ଚୁକ୍ତି ହେବା ଫଳରେ ୨୬ ତାରିଖ ଦିନ ଗାନ୍ଧୀଜୀ ଅନଶନ ଭାଙ୍ଗିଲେ । ଏହାର ଅନ୍ୟ ବିଶେଷ ଫଳ ହେଲା ଯେ ତାଙ୍କର ଅନଶନ ସମସ୍ତ ମଧ୍ୟରେ, ଅନେକ ଦେବାଳୟ ହରିଜନମାନଙ୍କ ପାଇଁ ଉନ୍ମୁକ୍ତ ହେଲା, ବିଶିଷ୍ଟ ହିନ୍ଦୁ ଭଦ୍ର ବ୍ୟକ୍ତିମାନେ ଅସ୍ପୃଶ୍ୟ ଜାତିର ଲୋକଙ୍କ ସହିତ ପ୍ରଥମ କରି ଏକାଠି ଭୋଜନ କଲେ, ବହୁ ଗ୍ରାମରେ ଲୋକେ ହରିଜନମାନଙ୍କୁ କୂଅରୁ ପାଣି ନେବାକୁ ଛାଡ଼ିଦେଲେ । ବହୁକାଳରୁ ସମାଜରେ ଚଳି ଆସୁଥିବା ଅଛୁଆଁ ଡାଏରି ଭାଙ୍ଗିଗଲା ।

ଗାନ୍ଧୀଜୀ ସାମ୍ପ୍ରଦାୟିକ ଭେଦଭାବକୁ ରାଜନୀତିରୁ ସମ୍ପୂର୍ଣ୍ଣ ଅଲଗା ରଖିବାକୁ ପାରୁପର୍ଯ୍ୟନ୍ତ ଚେଷ୍ଟା କରୁଥିଲେ । ତାଙ୍କର କର୍ମମୟ ଜୀବନର ଇତିହାସରେ ହିନ୍ଦୁମୁସଲମାନଙ୍କର ଐକ୍ୟ ଓ ଭ୍ରାତୃଭାବ ବଢ଼ାଇବା ଦିଗରେ ତାଙ୍କର ଉଦ୍ୟମ, ଉତ୍ସାହ ଓ କାର୍ଯ୍ୟପନ୍ଥା ଅମର ଅକ୍ଷରରେ ଲେଖା ହେବ । ଖିଲାଫତ ଆନ୍ଦୋଳନରୁ ଆରମ୍ଭ କରି ଭାରତର ବିଭକ୍ତୀକରଣ ପରେ ମୁସଲମାନମାନଙ୍କର ନିରାପତ୍ତା ପାଇଁ ଆମରଣ ଅନଶନ କରିବାର ତାଙ୍କର ଦୃଢ଼ ପ୍ରତିଜ୍ଞା ସମସ୍ତ ପର୍ଯ୍ୟନ୍ତ ବିତିଥିବା ଦୀର୍ଘକାଳ ମଧ୍ୟରେ· ଗାନ୍ଧୀଜୀ କେବେ ହେଲେ, ହିନ୍ଦୁମୁସଲମାନ ମୈତ୍ରୀନୀତି ପଥରୁ ବିଚଳିତ ହୋଇ ନ ଥିଲେ । ୧୯୪୬ ମସିହା ଅଗଷ୍ଟ ୧୬ ତାରିଖ ଦିନ ମୁସଲମାନମାନେ 'ପ୍ରତ୍ୟକ୍ଷ ସଂଗ୍ରାମ' ଦିବସ ପାଳିବାପାଇଁ ଜିନ୍ନାଙ୍କ ଆହ୍ୱାନର ଫଳସ୍ୱରୂପ ଓ ୧୯୪୭ ମସିହା ଅଗଷ୍ଟ ୧୫ ପନ୍ଦର ଦିନ ଭାରତ ଓ ପାକିସ୍ଥାନ ଅଲଗା ରାଜ୍ୟରୂପେ ପ୍ରତିଷ୍ଠିତ ହେବା ପଛେ ପଛେ ଯେଉଁ ନିର୍ମମ ହତ୍ୟାକାଣ୍ଡ, ଲୁଣ୍ଠନ, ନିକ୍ଷେପଣ ଘଟିବାଦ୍ୱାରା କୋଟି କୋଟି ଲୋକ ମଲେ, ଗୃହହୀନ, ଧନହୀନ ଓ କୁଟୁମ୍ବହୀନ ହେଲେ, ସେହି ହିଂସାବହ୍ନିକୁ ଶାନ୍ତ କରିପାରିଥିଲା କେବଳ ଗାନ୍ଧୀଜୀଙ୍କର ଅପରିସୀମ ନୈତିକଶକ୍ତି ଓ ସାହସ । ଏ ଶକ୍ତି ଓ ସାହସର ଦୃଷ୍ଟାନ୍ତ ପୃଥିବୀରେ ବିରଳ ମାତ୍ର ସୃଷ୍ଟିର ପରିହାସ ସ୍ୱରୂପ, ଅହିଂସାର ସେହି ନିର୍ଭୀକ ପ୍ରଚାରକ ଓ ନିଷ୍ଠାପର ସେବକ, ନିର୍ମମ ଆତତାୟୀର ହିଂସାସ୍ରୋତରେ ପ୍ରାଣ ହରାଇଲେ ।

କ୍ଷମତାରେ ଅସୀନ ପ୍ରତଦ୍ୱନ୍ଦୀ ଗୋଷ୍ଠୀପ୍ରତ ବପଦର ଆଶଙ୍କା ଥିଲେ ଅଥବା ସେହିଗୋଷ୍ଠୀ ଅସୁବଧାଜନକ ପରସ୍ଥିତରେ ସମ୍ମୁଖୀନ ହେଲେ, ସେହି ଅବସ୍ଥାରୁ ରାଜନୀତକ ଲଭ ଉଠାଇବାକୁ ଗାନ୍ଧୀଜୀ ଅବାଞ୍ଛନୀୟ ମନେ କରୁଥିଲେ । ୧୯୨୪ ମସିହା ଫେବୃଆରୀ ·ମାସରେ ଯେତେବେଳେ ଗାନ୍ଧୀ ଜେଲରୁ ମୁକ୍ତ ହେଲେ ଓ ସରକାର ତାଙ୍କର ଛଅବର୍ଷ କାରାଦଣ୍ଡରୁ ଭୋଗ ହୋଇ ନ ଥିବା ଅଂଶ ଛାଡ଼ିଦେଲେ, ସେହି ସମୟରେ ଭାରତର ବହୁ ସ୍ଥାନରେ ସନ୍ତ୍ରାସବାଦୀ ଦଳମାନଙ୍କର ହିଂସାତ୍ମକ-କାର୍ଯ୍ୟ ଦେଖି ଅତଶୟ. କ୍ଷୁବ୍ଧ ହେଲେ । ସେ ଲେଖିଥିଲେ ଆମ୍ଭେମାନେ ପ୍ରତଜ୍ଞାବଦ୍ଧ ହୋଇଥିଲେ ଯେ ଆମ୍ଭେମାନେ ଶାସକଗୋଷ୍ଠୀର ପ୍ରତଦ୍ୱନ୍ଦୀ ଅଥବା ସହଯୋଗୀ ସମସ୍ତଙ୍କପ୍ରତ ଅଥବା ପରସ୍ପର ପ୍ରତ ଅହିଂସ ହେବା । ସେମାନଙ୍କର ହୃଦୟ ଭିତରକୁ ଆମର ନବେଦନ ପହଞ୍ଚାଇବା ଓ ସେମାନଙ୍କ ଭିତରେ ଥିବା ଯେତେ ଭଲ ଗୁଣ ସବୁକୁ ସକ୍ରିୟ କରବା । ଅମର ସ୍ୱାର୍ଥ ସାଧନ ପାଇଁ ତାଙ୍କୁ ଭୟଭୀତ କରବା ନାହିଁ । ମାତ୍ର ଆମ୍ଭେମାନେ ଏହି ପ୍ରତଶ୍ରୁତ ପାଳନାହୁଁ । ଆମ୍ଭେମାନେ ପ୍ରତଦ୍ୱନ୍ଦୀମାନଙ୍କପ୍ରତ ଅସହିଷ୍ଣୁ ହୋଇଅଛୁ । ଆମର ନଜର ଦେଶର ଲୋକମାନେ ଆମ୍ଭମାନଙ୍କୁ ସନ୍ଦେହ କରୁଅଛନ୍ତ । ସେମାନେ ଅହିଂସା ନୀତରେ ବଶ୍ୱାସ କର ପାରୁନାହାନ୍ତ ।

ପୁନଶ୍ଚ, ଦ୍ୱିତୀୟ ପୃଥିବୀ ଯୁଦ୍ଧର ମଧ୍ୟଭାଗରେ ଯେତେବେଳେ, ବ୍ରିଟେନ ବହୁ ବପର୍ଯ୍ୟୟଗ୍ରସ୍ତ ହୋଇଥିଲ ଏବଂ ଆମଦେଶର ନେତାମାନଙ୍କମଧ୍ୟରୁ ଅନେକେ ଏହି ଅବସ୍ଥାର ସୁଯୋଗ ନେଇ ବ୍ରିଟେନ ବରୁଦ୍ଧରେ ସମସ୍ତ ଶକ୍ତ ବନଯୋଗ କର ଆନ୍ଦୋଳନ କରବାକୁ ଦୃଢ଼ ଭାବରେ ଦାବୀ କରୁଥିଲେ, ସେତେବେଳେ ଗାନ୍ଧୀଜୀ ଏହି ପ୍ରସ୍ତାବର ପ୍ରତରୋଧ କରଥିଲେ । ସେ କହିଲେ "ଆମ୍ଭେମାନେ ଇଂଲଣ୍ଡର ଧ୍ୱଂସ ଭିତରୁ ଆମର ସ୍ୱାଧୀନତା ଲୋଡ଼ୁନାହୁଁ । ଏହା ଅହିଂସାର ମାର୍ଗ ନୁହେଁ" ସେ କେବଳ ବ୍ୟକ୍ତଗତ ସତ୍ୟାଗ୍ରହ କରବା ସପକ୍ଷରେ ରାଜି ହୋଇଥିଲେ । କାରଣ ଭାରତର ବଡ଼ଲାଟ କେନ୍ଦ୍ର ବାଧନ ସଭାର ପରାମର୍ଶ ନ ନେଇ ନଜେ ନଜେ ଭାରତ ଯୁଦ୍ଧରେ ଯୋଗ ଦେଲ ବୋଲ ଘୋଷଣା କଲେ ଓ ଭାରତୀୟ ସୈନ୍ୟମାନଙ୍କୁ ଯୁଦ୍ଧ କ୍ଷେତ୍ରକୁ ପଠାଇବାର

ନିଷ୍ପତ୍ତି କଲେ । ଏହି କାର୍ଯ୍ୟର ପ୍ରତିବାଦ ଜଣାଇବାପାଇଁ ଗାନ୍ଧୀଜୀ ବ୍ୟକ୍ତିଗତ ସତ୍ୟାଗ୍ରହ ପାଇଁ ଅନୁମତି ଦେଲେ ।

ଚଳିତ ଶତାବ୍ଦୀ ଆଣବିକ ହିଂସାର ବିକଟାଳ ରୂପ ଧରି ଠିଆ ହୋଇଛି । ମହାତ୍ମାଗାନ୍ଧୀ କେନେଡ଼ି ଭ୍ରାତାଦ୍ୱୟ ମାର୍ଟିନ ଲୁଥର କିଙ୍ଗ ହିଂସାର ବଳି ହୋଇଚନ୍ତି । କିନ୍ତୁ ଗାନ୍ଧୀଜୀଙ୍କର ଧୀର ଗମ୍ଭୀର ବାଣୀ ଏହି ଯୁଗର ନିଷ୍ଠୁର ହିଂସାତ୍ମକ ଉତ୍ତେଜନା ମଧ୍ୟରେ ପରିଷ୍କାର ଶୁଣାଯାଉଚି । ଗାନ୍ଧୀଜୀ ଆମକୁ ଦେଖାଇଛନ୍ତି ଯେ ମନ୍ଦକୁ ପ୍ରତିରୋଧ କରିବାପାଇଁ ଅହିଂସ ମାର୍ଗ ଅଛି । ପୃଥିବୀଯାକ ଏହି ମାର୍ଗ ବୁଝି ପାରୁଛନ୍ତି ଓ ସାମାଜିକ ନ୍ୟାୟ, ବର୍ଣ୍ଣସାମ୍ୟ ଏବଂ ରାଜନୀତିକ ସ୍ୱାଧୀନତା ଲାଭ ପାଇଁ ଏହି ମାର୍ଗ ଅନୁସରଣ କରୁଛନ୍ତି ।

— ———

# RELEVANCE OF GANDHIN POLITIACAL IDEAS FOR THE MODERN WORLD

Dr. Benudhar Pradhan

Gandhiji is often chided as a revivalist, and an obscurantist, in the realm of economic doctrine. It is argued that through his advocacy for revival of the spinning-wheel, cottage and small-scale industries and labour-intensive methods of production and downright opposition to big machines and factory system of production he was making a vain bid to bring back the bullock-cart economy to India. While in the economic domain he is a controversial figure, and is considered as a pedastrian, yet in the realm of political ideas, he was far ahead of the nuclear age, nay, the age of the space-craft, trying to trot the surface of the moon.

Strictly speaking Gandhiji was not a politician. No doubt he galvanised the Indian liberation struggle by championing the cause of the masses and thereby enlisting their support, and changed the tenor of the movement by adding social and economic horizons to the political struggle. He was the spirit behind the

Indian National Congress, the Vanguard of the Indian nationalists, whether a member of the Party or not, whether holding any office in the Party or otherwise, he was the chief spokesman, of the Indian nationlism in ferment in relation to the British Government, and her representatives. He was the politician-par-excellence of resurgent India, treading the steps of the Buckingham Palace. Yet Gandhiji was not a politician in the accepted sense of the term. He was essentially a deeply religious man. It was only by an accident that he was drawn to the political arena. The historical forces pushed him to the forefront of Indian politics. Yet although he embraced politics deliberately, he had no mean ambition to occupy a position of vantage, or capture any office of profit, or to seek any personal laurel in Independent India. When independence came, instead of indulging in the scramble for power, or office, Gandhiji was fasting in Beliaghata, brooding over the evils of partition. If he stepped into the arena of politics, his was a disinterested motive, of redeeming politics from the slough of immorality and irrationality, and lend it a moral, rational, and a religious tone and temper.

As Gandhiji has himself said :

> "If I seem to take part in politics it is only because politics to-day encircle us like the coils of a snake from which one cannot get out no matter, how one tries I wish to wrestle with the snake, ······· I am trying to introduce religion into politics."

Politics in the modern world has degenerated into a game whose governing rules are cunning and craft, expediency and unscrupulousness. It may not be necessarily immoral, but it is atleast a End justifies the means and Machiavellism is normally considered as the supreme political virtue. But Gandhiji tried to salvage politics from the debris of amorality and Machiavellism, and spiritualise politics. Gandhiji demonstrated by his conduct that politics is not only inseparable from ethics, it is simply the extension of ethics to the realm of public affairs. For Gandhiji, means was as important as the end, or still more important than the latter. Politics was not an exception to it according to Gandhiji. It must be grounded on truth and shall employ the implements of non-violence and satyagraha to achieve its goal.

While Gandhiji spearheaded the Indian revolt against the British-raj in India, he did not harbour bitterness or animosity against the British Government or the British people. He was a true friend of the Britishers, who was never smitten by rancour or bitterness although waging a constant war against British Imperialism. Even during the war of liberation, he did never deviate from the principle that the means must be pure and noble, and if liberation from British dominion was a noble end, the means must be equally noble, and shall be founded on love and non-violence. Truth and non-violence showed him the way that one should not take advantage of the distress of his adversaries, to win a point or to gain a political advantage. Politics was not a questian of tactful bargaining for Gandhiji. It was a question of high moral principle, duty and sacrifice, and love of the adversary. Hence although he was fighting the war of the Indian settlers against the white Governments of South Africa, yet during the Boar-war and the Zulu rebillion, he organised ambulance corps in defence of the Natal Government. Subsequently when the World War I brokeout, Gandhiji's co-operation with the British Government was not wanting. On his

way home, he organised volunteers in defence of the British Government's war-effort and on his arrival in India, he persuaded the Indian politicians to suspend the agitation during the war and resume the same after the termination of the war. It may look as an irony of history that Gandhiji, the Father of The Indian Nation would accept decoration from the British Government for his services to the imperialistic war waged by Great Britain He also adopted the same line of policy after the outbreak of the Second World War.

Hence although a politician—of course not in the accepted sense of the term—his political scruples, inherited from his experiment with truth would not condone selfishness, but would extol self-suffering as the highest political virtue and diplomatic instrument to fight the adversary. A revolutionary that he was, he fought the battle, not with arms and ammunitions, either conventional or nuclear, but with fasting and self-suffering. the technique being directed not at coercing the adversary physically, nor to extort from him concessions, by inflicting on him sufferings, but by coercing him psychologically, rousing in him sympathy and pity, and by

converting him to your way of thought. Hence although Gandhiji was the Knight Errant, fighting the battle of the weak, against suffering and injustice, yet he fought the battle with an instrument, least depended upon, for waging war. He played the game of Real Politic with an overtone of idealism and spiritualism. That the Karen rebels of Burma, seated around the fireside, read Mahatma's solution or late Martin Luther King, fought non-violently for the civil rights of the Negroes, or the Czechoslovakian youth putting up very recently, non-violent resistance against the Soviet occupation forces are epitomes of inherent wisdom of Gandhian political ideas, and its relevance for the modern world.

Gandhian concept of non-violent state has also its relevance for the modern world, rather the only relevant theory for the modern world. Whether it is the Fascist or the Nazi state or the Communist or the Socialist State, there has been so much arrogation of powers by the state that the individuals are helpless spectators of diminution of their own power and dignity. With the coming into vogue of the recurring economic crises, centralised state planning, and prolifera-

tion of situations, that make emergencies normal feature of modern life, the state and the Government have become the repository of all power and dignity, and the power and dignity of the individual is at a discount. Thus with every increase in the dimension of state powers, the scope for the blossoming of individuality dwindles in the reverse direction. The tragedy of the modern world with such accretion of the powers of the state has been very appropriately highlighated by Sri Bertrand Russell thus :

> "There is over a large part of the earth's surface, something not unlike a reversion to the ancient Egyptian system of divine kingship controlled by a newly priestly caste.................... Individual initiative is hemmed in either by powerful state or by powerful corporations."

The problem that stares at the face is how to restrain the authority of the state and the Government, and open a wider vista for the proliferation of individual initiative and originality. Gandhiji provided the answer by contriving a non-violent state as the immediate objective and complete evaporation of the state as the ultimate goal.

A socially conscious individual occupies the centre of the stage in Gandhiji's scheme of social and political organisation. Although the prosperity of the society is never to be lost sight of by the individual, yet the development of the latter, his mental, moral and material growth is of primary significance in a social framework. Gandhiji's ideal society is one where the individuals are socially conscious beings, aware of social responsibility and practising cent per cent personal Swaraj, or self-rule. In such a state of human and social relationship, the State shall be a superfluity. But while in the ideal society of his conception, where individuals are socially conscious beings practising self-restraint or personal Swaraj, the state shall be superfluous, yet due to the imperfection of men they fail to develop and exhibit a socially-conscious and socially-oriented conscience and fail to practise self-restraint in their social relationship. Hence the need is felt for a coercive and force-employing agency, to ensure sociability in the individual and make him perfect fit in the social framework. The state is such an organisation, a force-employing and coereive organ. Accordingly said Gandhiji, "The state represents violence in a concentrated and organised form."

